# ଭୁବନେଶ୍ୱର ମନ୍ଦିର



ନୂତନ ସଂସ୍କରଣ—୧୯୩୯

ପ୍ରକାଶକ :—

ପଣ୍ଡିତ ଶ୍ରୀରତ୍ନାକର ଗର୍ଗବଟୁ

ଭୁବନେଶ୍ୱର, ପୁରୀ

ମୂଲ୍ୟ ୪ ୦ ।     ଗୁରଅଣା ମାତ୍ର

# ଭୁବନେଶ୍ୱର ମନ୍ଦିର

## ଉତ୍କଳର ଶିଳ୍ପ ବିଭବ



କେଶରୀ ବଂଶର ଗୌରବ-ଶିଖର ଭୁବନେଶ୍ୱର ମନ୍ଦିର ଜଗତରେ ଅତୁଳନୀୟ । ଏହାର ଶିଳ୍ପକଳା ବସ୍ତୁଶିଳ୍ପର ଅଦ୍ଭୁତ ପରାକାଷ୍ଠାର ନିଦର୍ଶନ । ତେଣୁ ଏହାକୁ ଦେଖିବା ଲାଗି ଜଗତର ଶିଳ୍ପୀ ଏବଂ ଶିଳ୍ପଗ୍ରାହୀ ଲୋକେ ଛୁଟି ଆସନ୍ତି ।

ତୋଷାଳୀ ରାଜ୍ୟସ୍ଥ ଭୁବନେଶ୍ୱର ତୋଷାଳୀର ରାଜଧାନୀ ଥିଲା । ସେଠାରେ ମନ୍ଦିରର ଅରଣ୍ୟ ଅଛି । ଭାଙ୍ଗି ଭାଙ୍ଗି ଯାହା ବାକୀ ରହିଛି, ତାହା ମଧ୍ୟ ଦର୍ଶକକୁ ବିସ୍ମୟମୁଗ୍ଧ କରେ । ଶିଳ୍ପୀର ଅବସର ନାହିଁ, ସେ ଗଢ଼ିଛି, ଗଢ଼ିଛି—ଅବିଶ୍ରାନ୍ତ ଭାବରେ ମନ୍ଦିର ଭାଙ୍ଗିଛି, ମନ୍ଦିର ଗଢ଼ିଛି ।

ଓଡ଼ିଆ ଜାତି ଆଜି ପତିତ ହେଲେ ମଧ୍ୟ ଏହି ମନ୍ଦିର ଅବଲୋକନରୁ ସେ ଯଥେଷ୍ଟ ପ୍ରେରଣା ପାଇବ । ଯାହାର ଚକ୍ଷୁ ଅଛି, ସେ ଦେଖିବ—ଯାହାର ହୃଦୟ ଅଛି, ସେ ଅନୁଭବ କରିବ ।

ଆଜି ଏ ଜାତୀୟ ଶିଳ୍ପ, ଜାତୀୟ କୀର୍ତ୍ତି ଦେଖି ଉତ୍କଳର ନବୀନ ଓ ପ୍ରାଚୀନ, ସାଧକ ଓ ଭକ୍ତ ମୁଗ୍ଧ ହୁଅନ୍ତୁ; ଏହି ମନ୍ଦିର-

ମାନଙ୍କ ସହିତ ଯଥେଷ୍ଟ ପରିଚିତ ହେବାପାଇଁ ଆଗ୍ରହାନ୍ୱିତ ହୁଅନ୍ତୁ । ଜାତୀୟ ଶିଳ୍ପ ସାଧନାର ଅଦ୍ଭୁତ ପରିଚୟ୍ଦ୍ୱାରା ଭୁବନେଶ୍ୱରର ମନ୍ଦିରମାନଙ୍କରେ ଦେଖି ଏ ପତିତ ଜାତିକୁ ଆଉ ଥରେ ଗୌରବ–ଶିଖରକୁ ଉଠାଇବାକୁ ଚେଷ୍ଟାକରନ୍ତୁ । କେବଳ ଏହି ଆଶାରେ ଭୁବନେଶ୍ୱରସ୍ଥ ପ୍ରଧାନମନ୍ଦିର ଗୁଡ଼ିକର ଫଟୋଚିତ୍ର ଏଥିରେ ଦିଆଗଲା ।

---

## ଲିଙ୍ଗରାଜ ମନ୍ଦିର ବା ବଡ଼ ଦେଉଳ ।

ଏହି ମନ୍ଦିରର ଉଚ୍ଚତା ୧୬୦ ଫୁଟ । ବେଢ଼ାର ଦୈର୍ଘ୍ୟ ୫୨୦ ଫୁଟ, ପ୍ରସ୍ଥ ୪୬୫ ଫୁଟ, କ୍ଷେତ୍ରଫଳ ୪୧ ଏକର । ସର୍ବପ୍ରଥମେ ଯଯାତି କେଶରୀ ଏହାର ନିର୍ମାଣକାର୍ଯ୍ୟ ଆରମ୍ଭ କରିଥିଲେ । ତାଙ୍କ ପରେ ଲଲାଟେନ୍ଦୁ କେଶରୀ ୬୬୬ ଖ୍ରୀଷ୍ଟାବ୍ଦରେ ନିର୍ମାଣ ଶେଷ କଲେ । ଏହାଛଡ଼ା ସନ୍ନିହିତ ଅନ୍ୟ ମନ୍ଦିରମାନ ଭିନ୍ନ ସମୟରେ ନିର୍ମିତ ହୋଇଥିଲା ।

---

## ରାଜାରାଣୀ ମନ୍ଦିର ।

ଏହି ମନ୍ଦିରର କାରୁକାର୍ଯ୍ୟ ଅତୁଳନୀୟ । ଏହା ବିମାନ ଓ ଜଗମୋହନ ଏହି ଦୁଇଭାଗରେ ବିଭକ୍ତ । ଖ୍ରୀଷ୍ଟୀୟ ନବମ ଶତାବ୍ଦୀ ଏହି ମନ୍ଦିରର ନିର୍ମାଣକାଳ ବୋଲି ସ୍ଥିରୀକୃତ ହୋଇ-ଅଛି । ମନୁମେଣ୍ଟ ଆକ୍ଟ ଅନୁସାରେ ଏହି ମନ୍ଦିର ଗଭର୍ଣ୍ଣମେଣ୍ଟଙ୍କ ତତ୍ତ୍ୱାବଧାନରେ ରହିଅଛି ।

---

## ମୁକ୍ତେଶ୍ୱର ମନ୍ଦିର ।

ଲିଙ୍ଗରାଜ ମନ୍ଦିରର ଅର୍ଦ୍ଧମାଇଲ ଦୂର ଉତ୍ତର ପୂର୍ବରେ ଏହି ମନ୍ଦିର ବିଦ୍ୟମାନ । ଅନ୍ୟ ମନ୍ଦିର ମାନଙ୍କଠାରୁ ଏହାର ନିର୍ମାଣ କୌଶଳରେ ଟିକିଏ ପ୍ରଭେଦ ଲକ୍ଷିତ ହୁଏ । ଏହାର ଚତୁର୍ଦ୍ଦିଗ ପ୍ରାଚୀର ବେଷ୍ଟିତ ।

---

## ପର୍ଶୁରାମେଶ୍ୱର ମନ୍ଦିର ।

ଏହି ମନ୍ଦିର ଖ୍ରୀଷ୍ଟୀୟ ୭ମ ବା ସପ୍ତମ ଶତାବ୍ଦୀରେ ନିର୍ମିତ ହୋଇଥିଲା । ଏହାର ଗଠନ ପ୍ରଣାଳୀ ଉତ୍କୀର୍ଣ୍ଣ କାରୁକାର୍ଯ୍ୟ ଗୁଡ଼ିକ ଅନ୍ୟାନ୍ୟମନ୍ଦିରଠାରୁ ସମ୍ପୂର୍ଣ୍ଣ ପୃଥକ୍ । ମନ୍ଦିରର ଭିତର ଅଂଶ ଖ୍ରୀଷ୍ଟାନ୍‌ମାନଙ୍କର ଗିର୍ଜାଭଳି ।

---

## ବ୍ରହ୍ମେଶ୍ୱର ମନ୍ଦିର ।

ବଡ଼ ଦେଉଳଠାରୁ ପ୍ରାୟ ଏକ ମାଇଲ ଦୂର ଉତ୍ତରରେ ଏହି ମନ୍ଦିର ଅବସ୍ଥିତ । ଏହା ଖ୍ରୀଷ୍ଟୀୟ ନବମ ଶତାବ୍ଦୀର ତୃତୀୟ ପାଦରେ ଉଦ୍ୟୋତ କେଶରୀଙ୍କଦ୍ୱାରା ନିର୍ମିତ ହୋଇଥିଲା । ଏହାର ପ୍ରାଙ୍ଗଣ ଅତି ବିସ୍ତୃତ । ଏହି ମନ୍ଦିରରୁ ଖଣ୍ଡିଏ ଶିଳାଲିପି ଆବିଷ୍କୃତ ହୋଇଅଛି ।

---

## କେଦାରେଶ୍ୱର ମନ୍ଦିର ।

ଏହା ପଞ୍ଚରଥବିଶିଷ୍ଟ । ଏହାର ପାର୍ଶ୍ୱରେ ପବିତ୍ର କେଦାର ଗୌରୀ କୁଣ୍ଡ, ଦୁଧଧୂଆ କୁଣ୍ଡ, ଗୌରୀମନ୍ଦିର ପ୍ରଭୃତି ବିଦ୍ୟମାନ ।

ଏହି ମନ୍ଦିରରେ କେଦାରେଶ୍ୱର ମହାଦେବ ଥିଲେ ସୁଦ୍ଧା, ବୃଷଭ ନ ଥାଇ ଏଠାରେ ଗରୁଡ଼ ମୂର୍ତ୍ତି ସ୍ଥାପିତ ହୋଇଅଛି । ଏ ଶକ୍ତି ସବୁବେଳେ ଜଳରେ ପୂର୍ଣ୍ଣ । କୌଣସି ପ୍ରାକୃତିକ ପ୍ରସ୍ରବଣ ସହିତ ଏହା ସଂଯୁକ୍ତ ।

## ସିଦ୍ଧେଶ୍ୱର ମନ୍ଦିର ।

ଏହା କେଦାରେଶ୍ୱର ମନ୍ଦିରର ଉତ୍ତର ପଶ୍ଚିମ କୋଣରେ ଅବସ୍ଥିତ । ଏହାର କାରୁକାର୍ଯ୍ୟର ସୁଷମା ସରଳ ସୁନ୍ଦର ଚବଣରେ ଫୁଟି ଉଠିଅଛି ।

## ଅନନ୍ତ ବାସୁଦେବ ମନ୍ଦିର ।

ଏହାର ନିର୍ମାଣପଦ୍ଧତି ଓ କାରୁକାର୍ଯ୍ୟାଦି ସହିତ ଲିଙ୍ଗରାଜ ମନ୍ଦିରର ବିଶେଷ ସାଦୃଶ୍ୟ ଅଛି । ମନ୍ଦିର ମଧ୍ୟରେ ଅନନ୍ତ, ବାସୁଦେବ, ସୁଭଦ୍ରାଙ୍କର ତିନୋଟି ପଥରର ମୂର୍ତ୍ତି ଅଛି । ପ୍ରାଙ୍ଗଣରେ ଆହୁରି ତିନୋଟି କ୍ଷୁଦ୍ର ମନ୍ଦିର ମଧ୍ୟ ସୁଶୋଭିତ । ଏହାର ପ୍ରାଚୀର ଗାତ୍ରରେ ଦୁଇଗୋଟି ଶିଳାଲିପି ଜଡ଼ିତ ଅଛି ।

## ବିନ୍ଦୁ ସରୋବର ।

ଏହି ପ୍ରକାଣ୍ଡ ପୁଷ୍କରିଣୀର ତୀର୍ଥମାହାତ୍ମ୍ୟ ଭାରତପ୍ରସିଦ୍ଧ । ଏହାର ଦୈର୍ଘ୍ୟ ୧୩୦୦ ଫୁଟ, ପ୍ରସ୍ଥ ୭୦୦ ଫୁଟ ଓ ହାରାହାରୀ ଗଭୀରତା ୨୦ ଫୁଟ । ଏଥିମଧ୍ୟସ୍ଥ ଦ୍ୱୀପଦଣ୍ଡୀର ଆକାର ଦୈର୍ଘ୍ୟରେ ୧୧୦ ଓ ପ୍ରସ୍ଥରେ ୧୦୦ ଫୁଟ । ଚନ୍ଦନଯାତ୍ରା ସମୟରେ ଲିଙ୍ଗରାଜଙ୍କ ଚଳନ୍ତୀ ପ୍ରତିମା ଏହାର ପବିତ୍ର ଜଳରେ ଖେଳନ୍ତି । ପୁଷ୍କରିଣୀର ଉତ୍ତର ଓ ପୂର୍ବ ପାର୍ଶ୍ୱମାନଙ୍କରେ କାରୁକାର୍ଯ୍ୟ ଖଚିତ ମନୋହର ଅନେକ ମନ୍ଦିର ବିଦ୍ୟମାନ ।



୧ । ଲିଙ୍ଗରାଜ ମନ୍ଦିର ବା ବଡ ଦେଉଳ ।



୨ । ଲିଙ୍ଗରାଜ ମନ୍ଦିରର ଉତ୍ତର ପଶ୍ଚିମ ପାର୍ଶ୍ୱର କାରୁକଳା



୩ । ଲିଙ୍ଗରାଜ ମନ୍ଦିରର ଉତ୍ତର ପୂର୍ବ ପାର୍ଶ୍ୱର ନାନାଦୃଶ୍ୟ



୪। ଲିଙ୍ଗରାଜ ମନ୍ଦିରର 'ମୁହାଁଣ' ବା ସମ୍ମୁଖ ପାର୍ଶ୍ୱର ଚିତ୍ର



୫ । ରାଜାରାଣୀ ମନ୍ଦିର ।



୭ । ମୁକ୍ତେଶ୍ୱର ମନ୍ଦିର ।



୨ । ପର୍ଶୁରାମେଶ୍ୱର ମନ୍ଦିର ।



୮ । ବ୍ରହ୍ମେଶ୍ୱର ମନ୍ଦିର ।



୯ । କେଦାରେଶ୍ୱର ମନ୍ଦିର ।



୧୦ । ଦିଶେଶ୍ୱର ମନ୍ଦିର ।



୧୧ । ଅନନ୍ତ ବାସୁଦେବ ମନ୍ଦିର ।



୧୨ । ବିନ୍ଦୁ ସରୋବର ।

# ବିଜ୍ଞାପନ

ଭୁବନେଶ୍ୱର ସମ୍ବନ୍ଧୀୟ ନିମ୍ନଲିଖିତ ପୁସ୍ତକମାନ ଆମ୍ଭର ନିମ୍ନ ଠିକଣାରେ ବିକ୍ରୟ ନିମିତ୍ତ ରକ୍ଷିତ ଅଛି ।

| | | |
|---|---|---|
| ଏକାମ୍ରଚନ୍ଦ୍ରିକା | (ସଂସ୍କୃତ) | ଟ ୦ ୫ |
| କପିଳ ସଂହିତା | (ସଂସ୍କୃତ) | ଟ ୦ ।୵ |
| ଶୈବ ଚିନ୍ତାମଣି | | ଟ ୦ । |
| ଅନନ୍ତ ବାସୁଦେବଙ୍କ ଶିଳାଲିପି | | ଟ ୦ ୵ |
| ” | (ବଙ୍ଗଳା) | ଟ ୦ ୵ |
| ମେଘେଶ୍ୱର ଶିଳାଲିପି | | ଟ ୦ ୵ |
| ବ୍ରହ୍ମେଶ୍ୱର ଶିଳାଲିପି | | ଟ ୦ ୵ |
| ଭୁବନେଶ୍ୱର ବିବରଣ | | ଟ ୦ ୵ |
| ଭୁବନେଶ୍ୱର | (ଇଂରାଜୀ) | ଟ ୦ । |
| ” | (ବଙ୍ଗଳା) | ଟ ୦ । |
| ” | (ଓଡ଼ିଆ) | ଟ ୧ ୧ |
| ଭୁବନେଶ୍ୱର ମନ୍ଦିର | | ଟ ୦ । |
| ଏକାମ୍ର ପୁରାଣ | | ଟ ୦ ୫ |
| ସ୍ୱର୍ଣ୍ଣାଦ୍ରି ମହୋଦୟ | (ସଂସ୍କୃତ) | ଟ ୦ ୫ |
| ଶିବରାସକ୍ରୀଡ଼ା | | ଟ ୦ / |

ଠିକଣା:—

**ଶ୍ରୀ ରାଧାରମଣ ପୁସ୍ତକାଳୟ**

ପୋ: ଅ: ଗୃଦ୍ଧମାଚୌକ

ବାଲୁବଜାର, କଟକ

☞ ମୁଦ୍ରାକର—ଶ୍ରୀ ଗୋବିନ୍ଦ ଚନ୍ଦ୍ର ରାଓ ।

ଚକ୍ରଧରପ୍ରସ୍ତର ପ୍ରେସ୍, ଶୁଦ୍ଧମାଚୌକ, କଟକ । ୧୯୩୧